# ଐତିହାସିକ ତାରିଣୀଚରଣ ରଥ



ତାରିଣୀଚରଣ ରଥଙ୍କର ଜନ୍ମ ୧୮୮୩ ମସିହାରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁରଠାରେ ହୋଇଥିଲା । ସେତେବେଳେ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା । ମାନ୍ଦ୍ରାଜର ଶିକ୍ଷା ବିଭାଗରେ କାର୍ଯ୍ୟକରୁଥିବା ସ୍ୱର୍ଗତ ଶ୍ରୀବସ ରଥଙ୍କର ସେ ଥିଲେ ଜ୍ୟେଷ୍ଠ ପୁତ୍ର । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସେହି ଅଞ୍ଚଳରେ ସବୁ କ୍ଷେତ୍ରର ଅଣ-ଓଡ଼ିଆମାନଙ୍କର ଯଥେଷ୍ଟ ପ୍ରତିପତ୍ତି ଥିଲା । ସେହିଭଳି ଏକ ସମୟରେ ଏହି ରଥ ପରିବାରର ଲୋକେ ସର୍ବପ୍ରଥମ ଓଡ଼ିଆ ଯେଉଁମାନେ କି ଉଚ୍ଚଇଂରାଜୀ ଶିକ୍ଷା ଲାଭ କରିଥିଲେ । ବିଂଶଶତାବ୍ଦୀର ପ୍ରଥମ ଦଶନ୍ଧିରେ ଗଞ୍ଜାମ ଜିଲ୍ଲାରେ ଦଶ ଜଣ ମାତ୍ର ଓଡ଼ିଆ ଗ୍ରାଜୁଏଟ ଥିଲେ ଏବଂ ସେଥି ଭିତରେ ୮ ଜଣ ପର୍ଯ୍ୟନ୍ତ ଏହି ରଥ ପରିବାରର । ତାରିଣୀଚରଣ ରଥ ୧୯୦୪ ମସିହାରେ ମାନ୍ଦ୍ରାଜର ପ୍ରେସିଡ଼େନ୍ସି କଲେଜରୁ ସ୍ନାତକ (ଗ୍ରାଜୁଏଟ) ହୋଇଥିଲେ । ସେହି ସମୟରେ ଗଞ୍ଜାମ ଜିଲ୍ଲାରେ ସ୍କୁଲ ବିଭାଗର ପରିଦର୍ଶକ ପଦ ପର୍ଯ୍ୟନ୍ତ ମଧ୍ୟ ଅଣଓଡ଼ିଆମାନଙ୍କୁ ମିଳୁଥିଲା । ସେମାନେ ଓଡ଼ିଆ ଭାଷାରେ ସାମାନ୍ୟ ମାତ୍ର ପରୀକ୍ଷା ଦେଇ ଉକ୍ତ ପଦବୀ ପାଇଁ ଉପଯୁକ୍ତ ବିବେଚିତ ହୋଇଯାଉଥିଲେ । ଏହି ପରିପ୍ରେକ୍ଷୀରେ ସେତେବେଳେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ରହିଥିବା ଗଞ୍ଜାମ ଜିଲ୍ଲାର ଗୋଟିଏ ଯୁବଗୋଷ୍ଠୀ ଓଡ଼ିଆ ଭାଷାର ସୁରକ୍ଷା ଲାଗି ଶିକ୍ଷା ବିଭାଗରେ କାର୍ଯ୍ୟ କରିବାକୁ ନିଷ୍ପତ୍ତି ଗ୍ରହଣ କଲେ ।

ସେ ବ୍ରହ୍ମପୁର ଡେଞ୍ଜରରେ ସବ୍‌ଆସିଷ୍ଟାଂ ଇନ୍‌ସପେକ୍‌ଟର ରୂପେ ଦୁଇ ବର୍ଷ କାର୍ଯ୍ୟ କରିବା ପରେ ମାନ୍ଦ୍ରାଜରେ ପୁଣି ଆଇନ ଅଧ୍ୟୟନ କଲେ ଏବଂ ପ୍ରଥମ ଓଡ଼ିଆ ଓକିଲ ଭାବରେ ବ୍ରହ୍ମପୁରଠାରେ ଓକିଲତି ଆରମ୍ଭ କଲେ । ୧୯୦୮ ମସିହାରେ ମାନ୍ଦ୍ରାଜ ବିଗ୍ରହ ବିଭାଗରେ ଜିଲ୍ଲା ମୁନସିଫ୍ ଭାବରେ ସେ ନିଯୁକ୍ତି ପାଇଲେ । ସେ ହେଉଛନ୍ତି ମାନ୍ଦ୍ରାଜ ପ୍ରଦେଶରେ ପ୍ରଥମ ଓଡ଼ିଆ ଜିଲ୍ଲା ମୁନିସପ । ମାନ୍ଦ୍ରାଜର ବିଭିନ୍ନ ସ୍ଥାନରେ ଚାକିରି କରି ୧୯୨୨ ମସିହା ଖରାଦିନେ ସେ ଅନେକ ଆସିଥିଲେ ବନ୍ଧୁବାନ୍ଧବମାନଙ୍କୁ ଭେଟିବା ଲାଗି ଛୁଟିରେ ଆସିଥିଲେ । ସେହି ସମୟରେ ହଠାତ୍ ସେରିବ୍ରାଲ ମ୍ୟାଲେରିଆ ଦ୍ୱାରା ଆକ୍ରାନ୍ତ ହୋଇ ଜୁନ୍ ୨୨ ତାରିଖରେ ପରଲୋକପ୍ରାପ୍ତ ହୋଇଥିଲେ । ସେ ଦେହତ୍ୟାଗ କଲାବେଳକୁ ତାଙ୍କୁ ମାତ୍ର ୩୯ ବର୍ଷ ହୋଇଥିଲା ।

ସେ ଜଣେ ଆଇନଜୀବୀ ଓ ବିଗ୍ରହ ବିଭାଗୀୟ କର୍ମଚାରୀ ଥିଲେ ମଧ୍ୟ ସାହିତ୍ୟ ସୃଷ୍ଟି କାର୍ଯ୍ୟ ତଥା ଐତିହାସିକ ଗବେଷଣା କାର୍ଯ୍ୟରେ ସେ ଲିପ୍ତ ଥିଲେ । ୧୯୦୪ ମସିହାରୁ ସେ ବରାବର 'ଉତ୍କଳ ସାହିତ୍ୟ'ରେ ଲେଖାଲେଖି କରୁଥିଲେ । ତାଙ୍କ ଲେଖାମାନଙ୍କରୁ ପ୍ରମାଣ ମିଳୁଛି ଯେ ଶିକ୍ଷା ଶେଷ ପରେ ପରେ ସେ ଲେଖା ଲେଖି ଆରମ୍ଭ କରିଥିଲେ । କବିତା, ଯୁଦ୍ଧପତ୍ର, ଇତିହାସ ପ୍ରସିଦ୍ଧ ସ୍ଥାନମାନଙ୍କ ସମ୍ପର୍କରେ ଗବେଷଣାମୂଳକ ପ୍ରବନ୍ଧ ତାଙ୍କ ଲେଖା ମଧ୍ୟରେ ମୁଖ୍ୟ ଥିଲା । ତାଙ୍କର ଶେଷ ଲେଖାଟି ଉତ୍କଳ ସାହିତ୍ୟରେ ୧୯୨୧ ମସିହାରେ ତାଙ୍କର ମୃତ୍ୟୁର ଠିକ ଏକ ବର୍ଷ ପୂର୍ବରୁ

ପ୍ରକାଶ ପାଇଥିଲା । ସେ ମଧ୍ୟ ଘୁମ ସରର ଇତିହାସ, ଓଡ଼ିଆ ସାହିତ୍ୟର ଇତିହାସ, ଋଷିକୁଲ୍ୟା, ମଦନମଞ୍ଜରୀ, ମୋହିନୀ ବା ଉତ୍କଳ ବିଜୟ ପ୍ରଭୃତି ବହୁତ ପୁସ୍ତକ ଲେଖିଥିଲେ।

ଓଡ଼ିଆ ସାହିତ୍ୟର ଇତିହାସ ସଂକ୍ରାନ୍ତ କ୍ଷୁଦ୍ର ପୁସ୍ତକଟି ସେ ବିଷୟରେ ଓଡ଼ିଆରେ ପ୍ରଥମ ଲେଖା। ମୃତ୍ୟୁ ସମୟକୁ "ଅନ୍ନପୂର୍ଣ୍ଣା" ଶିରୋନାମାରେ ଏକ ଐତିହାସିକ ଉପନ୍ୟାସ ସେ ଲେଖୁଥିଲେ । ତାଙ୍କ ମୃତ୍ୟୁର ଅଳ୍ପ କେତୋଟି ମାସ ପୂର୍ବରୁ ୧୯୨୨ ମାର୍ଚ୍ଚ ୯ ତାରିଖରେ ହୋଇଥିବା ଉତ୍କଳ ସାହିତ୍ୟ ସମ୍ମିଳନୀର ଅଧିବେଶନରେ ତାଙ୍କର "ଜୟଚନ୍ଦ୍ରଦେବଙ୍କ ତାମ୍ରଶାସନ" ପ୍ରବନ୍ଧ ପାଠ କରାଯାଇଥିଲା।

ସାହିତ୍ୟିକ କାର୍ଯ୍ୟକଳାପ ସାଙ୍ଗକୁ ସ୍ୱର୍ଗତ ରଥଙ୍କର ଐତିହାସିକ ଗବେଷଣା ଓ ଶିଳାଲିପି ଅଧ୍ୟୟନରେ ବିଶେଷ ଅଭିରୁଚି ଥିଲା। ଏହି କ୍ଷେତ୍ରରେ ସର୍ବପ୍ରଥମେ ଯେଉଁ ଓଡ଼ିଆମାନଙ୍କର ମୌଳିକ ଅବଦାନ ରହିଛି, ସେମାନଙ୍କ ମଧ୍ୟରେ ସେ ଅନ୍ୟତମ। ତାଙ୍କର ଗବେଷଣାର ତଥ୍ୟାବଳି ବିହାର ଓ ଓଡ଼ିଶା ରିସର୍ଚ୍ଚ ସୋସାଇଟିର ପତ୍ରିକା 'ଏପିଗ୍ରାଫିଆ ଇଣ୍ଡିକା'ର (ଦେଖିଣ ଭାରତ) ପ୍ରକାଶ ପାଇଥିଲା। ଶିଳାଲିପି ସଂକ୍ରାନ୍ତ ୧୯୧୮ ମସିହା ବାର୍ଷିକ ରିପୋର୍ଟରେ ସହକାରୀ ପ୍ରତ୍ନତାତ୍ତ୍ୱିକ ସୁପରିଣ୍ଟେଣ୍ଡେଣ୍ଟ ନିମ୍ନଲିଖିତ ପ୍ରକାରେ ଅଭିମତ ପ୍ରକାଶ କରିଛନ୍ତି—

"ଶ୍ରୀ ତାରିଣୀଚରଣ ରଥଙ୍କ ଅନୁରୋଧ କ୍ରମେ ମୁଁ ୫।୧୦।୧୯୧୭ ରେ ବ୍ରହ୍ମପୁର ଗଲି। ଶ୍ରୀ ରଥ ଜଣେ ଅତ୍ୟନ୍ତ ନିଷ୍ଠାପର ବିଦ୍ୱାନ ବ୍ୟକ୍ତି। ଓଡ଼ିଆ ଦେଶର ପ୍ରତ୍ନତାତ୍ତ୍ୱିକ ଇତିହାସରେ ତାଙ୍କର ଯଥେଷ୍ଟ ଆଗ୍ରହ ରହିଛି । × × × ସେ ଆମ ପାଇଁ ପାଞ୍ଚ ସାଜ ମୂଲ୍ୟବାନ ତାମ୍ର ପତ୍ର ଯୋଗାଡ଼ କରିଥିଲେ। ସେଥିମଧ୍ୟରୁ ଗୋଟିଏ ଓଡ଼ିଆ ଭଞ୍ଜ ରାଜବଂଶର ଏବଂ ଅନ୍ୟଟି ନବମ ଶତାବ୍ଦୀର ଗଙ୍ଗବଂଶୋଦ୍ଭବ ଇନ୍ଦ୍ର ବର୍ମାଙ୍କର। ତାଙ୍କ ଦ୍ୱାରା ସଂଗୃହୀତ ତାମ୍ର ପତ୍ରଗୁଡ଼ିକ ସମ୍ପର୍କରେ ସେଥିରେ ଥିବା ବିଷୟବସ୍ତୁର ବ୍ୟାଖ୍ୟା ସହ 'ଇପିଗ୍ରାଫିଆ ଇଣ୍ଡିକା'ରେ ପ୍ରକାଶ ପାଇଛି।" ଶ୍ରୀ ଆର. ଡି. ବାନର୍ଜି ମଧ୍ୟ ତାଙ୍କ ଓଡ଼ିଶା ଇତିହାସ ପୁସ୍ତକରେ ତାରିଣୀଚରଣ ରଥଙ୍କ ଦ୍ୱାରା ହୋଇଥିବା ତାମ୍ରପତ୍ର ବ୍ୟାଖ୍ୟା ବିଷୟରେ ଉଲ୍ଲେଖ କରିଛନ୍ତି । ସେ ତାଙ୍କ ବହିର "ହର୍ଷବର୍ଦ୍ଧନ ଓ ଶୈଳୋଦ୍ଭବଗଣ" ଶୀର୍ଷକ ନବମ ଅଧ୍ୟାୟରେ ମତବ୍ୟ ପ୍ରକାଶ କରିଛନ୍ତି,—" ଶୈଳୋଦ୍ଭବ ରାଜବଂଶର ରାଜା ଧର୍ମରାଜଙ୍କ ସଂକ୍ରାନ୍ତ ତଥ୍ୟାବଳି ସ୍ୱର୍ଗତ ତାରିଣୀଚରଣ ରଥ ମାଦ୍ରାଜର ବିଦ୍ୟା ଭବନରେ ମୁନସଫ ଥିବାବେଳେ କେତେକ ତାମ୍ରପତ୍ରରେ ଖୋଦିତ ଲିପିରୁ ସର୍ବପ୍ରଥମେ ଲୋକଲୋଚନକୁ ଆଣିଥିଲେ"। ଆର. ଡି. ବାନର୍ଜି ତାଙ୍କ ବହିର 'ଓଡ଼ିଶାର ଅଧୋପତନ—ପ୍ରତାପରୁଦ୍ର" ଶୀର୍ଷକ ୨୧ତମ ଅଧ୍ୟାୟରେ ଦର୍ଶାଇଛନ୍ତି, "ମାଦ୍ରାଜରେ ମୁନିସଫଭାବେ କାର୍ଯ୍ୟ କରିଥିବା ଜଣେ ଓଡ଼ିଆ ସ୍ୱର୍ଗତ ତାରିଣୀଚରଣ ରଥ ୧୯୨୦ ମସିହାରେ ଗୋଟିଏ ପ୍ରବନ୍ଧରେ ପ୍ରତାପରୁଦ୍ରଙ୍କର କମଗ୍ରୀ, ରାମାନନ୍ଦ ରାୟଙ୍କ ସମ୍ପର୍କରେ ଓଡ଼ିଆଙ୍କ ଅଭିମତକୁ ପ୍ରକଟ କରିଛନ୍ତି। ତାଙ୍କ ମତରେ ରାମାନନ୍ଦ ରାୟ କରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ଏବଂ ସେ ଜନ୍ମରୁ ଜଣେ ଓଡ଼ିଆ

ଥିଲେ ।" ଶ୍ରୀ ଦାନ୍ଙ୍କ 'ଓଡ଼ିଶା ସାମ୍ରାଜ୍ୟ ପୁରୁଷୋତ୍ତମ" ଶୀର୍ଷକ ୨୦ତମ ଅଧ୍ୟାୟରେ ତାରିଣୀଚରଣ ରଥଙ୍କର ୧୯୧୯ ମସିହାର ଏକ ଲେଖାରୁ ଉକ୍ତ ବିଷୟରେ ଉଦ୍ଧାର କରିଛନ୍ତି—"ରାଜା ପୁରୁଷୋତ୍ତମଙ୍କର କାଞ୍ଚି କାବେରୀ ଯୁଦ୍ଧଯାତ୍ରାର ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଧାରଣ କରିବା ଏବଂ ସମସାମୟିକ କର୍ଣ୍ଣାଟକର ରାଜା କିଏ ଜାଣିବା କଷ୍ଟକର ବ୍ୟାପାର। ରାଜା ପୁରୁଷୋତ୍ତମ କର୍ଣ୍ଣାଟକର ରାଜାଙ୍କ ସହିତ ଯୁଦ୍ଧ କରି ତାଙ୍କର କନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ ।"

### ସ୍ୱର୍ଗୀୟ ତାରିଣୀଚରଣ ରଥ ଙ୍କ ରଚନାବଳି

୧—ପ୍ରତାପ ଶ୍ରେଣୀ (୧୯୦୪); ୨—ଅହଲ୍ୟାବାଈ (୧୯୦୪); ୩—ଶୁଆ ଓ କାଉକଥା (୧୯୦୪); ୪—ଜୀବ ରାଜ୍ୟ (୧୯୦୬); ୫—ମହାକବି ଉପେନ୍ଦ୍ର ଭଞ୍ଜ ବୀରବର (୧୯୦୮) ;୬—ଜୀବମାନଙ୍କର ପୁନରୁତ୍ପତ୍ତି (୧୯୧୦); ୭—କାଳିପଦା କଥା (୧୯୧୧); ୮—ଜୀବର ଉତ୍ପତ୍ତି (୧୯୧୧); ୯—କଇଁରେଇ ଫୁଲ କଥା (୧୯୧୨); ୧୦—କେରାଣ୍ଡି ମାଛ କଥା (୧୯୧୨); ୧୧—ସାବିତ୍ରୀ ପୂଜା (୧୯୧୨); ୧୨—ଉତ୍କଳର ପ୍ରଥମ କବି କିଏ (୧୯୧୩); ୧୩—ଜୀବଜଗତରେ ମନୁଷ୍ୟର ସ୍ଥାନ (୧୯୧୩); ୧୪—ରାଜ କବି ଘନ ଭଞ୍ଜ (୧୯୧୩); ୧୫—ସ୍ୱର୍ଗୀୟ ନୃସିଂହ ଦାସଙ୍କ ମୃତ୍ୟୁ ଉପଲକ୍ଷେ (୧୯୧୩); ୧୬—ମାଇଗୁଲିଆ ଟଙ୍କେଇ ସାହୁ (୧୯୧୫); ୧୭—ସୂର୍ଯ୍ୟମଣି କବି (୧୯୧୫); ୧୮—କବିସୂର୍ଯ୍ୟ ଯାୟଗୁରୁ (୧୯୧୫); ୧୯—କବି ଭରତ ଶେଷଣ (୧୯୧୫); ୨୦—ଦକ୍ଷିଣ ଓଡ଼ିଶା ସାହିତ୍ୟ (୧୯୧୯); ୨୧—ଓଡ଼ିଆ କବିତାରେ ଉପେନ୍ଦ୍ର ମିଶ୍ର (୧୯୨୧); ୨୨—ଓଡ଼ିଆ ଲିପି (୧୯୨୧); ୨୩—କବି ଦ୍ୱୟଙ୍କ ସଂସାର ଓ ଜୀବନ ଚିତ୍ର (୧୯୨୧); ୨୪—ଉତ୍ତର (୧୯୨୧); ୨୫—ଜୀବମାନଙ୍କର ଅପଗମନ ଓ ଲୋପ ୨୬—ମେରିଆ ବଳି; ୨୭—ପ୍ରାଚୀନ ଭାରତର ସାହିତ୍ୟ ସମ୍ପତ୍ତି; ୨୮—ବିବେକ ରାୟ ରାଧାନାଥ ରାୟ ବାହାଦୁର; ୨୯—ସିଂହରାଜ; ୩୦—କବି ଭୂପତି ପଣ୍ଡିତ; ୩୧—ପଦ୍ୟାବଳି; ।

ଉପରୋକ୍ତ ଲେଖା "ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ।

### ପୁସ୍ତକାକାରରେ ପ୍ରକାଶିତ

୧—ମଦନ ମଞ୍ଜରୀ; ୨—ମୋହିନୀ ଦେ' ଉତ୍କଳ ବିନୟ; ୩—ରଷିକୁଲ୍ୟା; ୪—ଉତ୍କଳ ସାହିତ୍ୟର ଇତିହାସ; ୫—ଅଣ୍ଡପୂର୍ଣ୍ଣା ।

### ଐତିହାସିକ ଏବଂ ପ୍ରତ୍ନତାତ୍ତ୍ୱିକ

୧—ଗୁମୁସର ଇତିହାସ; ୨—ଜୟ ଭଞ୍ଜ ଦେବଙ୍କ ତାମ୍ର ଶାସନ; ୩—ବୁଦ୍ଧଦୁର୍ଗ ବର୍ଣ୍ଣନ; ୪—ଜଉଗଡ଼; ୫—ଠମା; ୬—ଅନନ୍ତ ବର୍ମ ଚୋଡ଼ଗଙ୍ଗ ଦେବ; ୭—ଗଞ୍ଜାନଗର ।

8—Note on Orissa temples and copper plate inscriptions.; 9—King Pratap Rudra Deva of Orissa and his Saraswativilas (B & O Research Society Journal Vol.IV) 1918.;;10—Purushotam Deva King of Orissa (-do-1919-Vol V); 11—Ramananda Raya (do- 1920-Vol. VI);

**In addition, his contributions are found in the following**

1—Annual Report on epigraphy Southern circle-1917 Appx.12-P.9; 2—do- 1918- P. 7, P. 12 & P.135; 3—do-1921-APPX. A; 4—Epigraphia Indica-1919-20 XV Vol. P.275: 5—do-Vol XIX-1927-28 P. 41 & P. 134.

# ଉତ୍କଳ ସାହିତ୍ୟରେ ପ୍ରକାଶିତ ପ୍ରଥମ ପ୍ରବନ୍ଧର ଉଦ୍ଧୃତାଂଶ

ଆଶ୍ୱିନ ୧୩୧୧ ଉତ୍କଳ ସାହିତ୍ୟର ୭ମ ଭାଗ ୬ଷ୍ଠ ସଂଖ୍ୟାରେ ସ୍ୱର୍ଗତ ତାରିଣୀ ଚରଣ ରଥଙ୍କ ପ୍ରଥମ ପ୍ରବନ୍ଧ "ଜୀବ ଶରୀରର ବର୍ଣ୍ଣସଂସ୍ଥାନ"ରେ ଲେଖାଅଛି–

"ଏହି ପୃଥିବୀରେ ଯେତେ ପ୍ରାଣୀ ବାସକରନ୍ତି ସମସ୍ତେ ବର୍ଣ୍ଣ ବିଶିଷ୍ଟ ଅଟନ୍ତି । କ୍ଷୁଦ୍ରତମ ଜୀବଟଠାରୁ ପ୍ରକାଣ୍ଡ ବିଶାଳକାୟ ଜନ୍ତୁ ପର୍ଯ୍ୟନ୍ତ ପ୍ରତ୍ୟେକର କୌଣସି ଏକ ବର୍ଣ୍ଣଥାଏ । ପ୍ରାଣି ଜଗତରେ ବର୍ଣ୍ଣର ବହୁବିଧତା, ବୈଚିତ୍ର୍ୟ ଓ ମନୋହାରିତା ଦେଖିବାକୁ ଗଲେ ଏକାବେଳକେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼େ । ଏହି ସମସ୍ତ ବର୍ଣ୍ଣ ଜୀବଶରୀରସ୍ଥ ଚମର ଗୋଟିଏ ସ୍ତରରେ ଥିବା ରଙ୍ଗପଦାର୍ଥ ବିଶେଷରୁ ଉତ୍ପନ୍ନ । ବର୍ଣ୍ଣ ନାନାପ୍ରକାର । ରକ୍ତ, ନୀଳ ଓ ହରିଦ୍ରା ଏହି ତିନୋଟି ମୂଳ-ବର୍ଣ୍ଣ ଏବଂ ଏମାନଙ୍କ ମିଶ୍ରଣଦ୍ୱାରା ନାନା ପ୍ରକାର ବର୍ଣ୍ଣଜାତ ହୁଏ । ଗୌର ଓ କୃଷ୍ଣ ପୂର୍ବୋକ୍ତ ମୂଳ ବର୍ଣ୍ଣମାନଙ୍କ ପରି ପୃଥକ ବର୍ଣ୍ଣ ନୁହଁନ୍ତି । ଗୌରବର୍ଣ୍ଣ ବିଭିନ୍ନ ପ୍ରକାର ବର୍ଣ୍ଣସଂଯୋଗର ଫଳ ଅଟେ ଏବଂ କୃଷ୍ଣବର୍ଣ୍ଣ କୌଣସି ଦୁଇ ବର୍ଣ୍ଣର ପ୍ରତିଘାତ ଦ୍ୱାରା ଜନ୍ମେ । ଏହି ସ୍ଥଳରେ ବର୍ଣ୍ଣର ତତ୍ତ୍ୱ ବିଷୟରେ ଅଧିକ କହିବା ଅନୁଚିତ । କାରଣ ପ୍ରବନ୍ଧର ଉଦ୍ଦେଶ୍ୟ ଭିନ୍ନ । ଗୋଟିଏ ଜୀବର ସଂପୂର୍ଣ୍ଣ ଅବୟବ ନାନାବିଧ ବର୍ଣ୍ଣମଧ୍ୟରୁ କୌଣସି ଏକ ବର୍ଣ୍ଣବିଶିଷ୍ଟ ହୋଇଥାଏ ବା ଭିନ୍ନ ଭିନ୍ନ ଅବୟବ ବିଭିନ୍ନ ବର୍ଣ୍ଣ ବିଶିଷ୍ଟ ହୋଇଥାଏ । କେଉଁ କେଉଁଠାରେ ବିବିଧ ବର୍ଣ୍ଣର ଏପରି ପ୍ରଗାଢ଼ ମିଶ୍ରଣ ଦେଖାଯାଏ ଯେ, ପ୍ରକୃତିର ଅଦ୍ଭୁତ ଘଟଣା ସଂଦର୍ଶନରେ ମନ ବିମୋହିତ ହୋଇଯାଏ । ପ୍ରାଣୀମାନଙ୍କ ବର୍ଣ୍ଣର ଏହି ବହୁବିଧତା, ବୈଚିତ୍ର୍ୟ ଓ ମନୋହାରିତା ନିରର୍ଥକ ନା ଏହାର କିଛି ଲକ୍ଷ୍ୟ ଅଛି ? ବୈଜ୍ଞାନିକଗଣ ପରୀକ୍ଷା ଓ ବିବେଚନାଦ୍ୱାରା ସ୍ଥିର କରିଅଛନ୍ତି ଯେ ଏ ସମସ୍ତ ନିରର୍ଥକ ନୁହେଁ; ମାତ୍ର ପ୍ରତ୍ୟେକର ବା ଅଧିକାଂଶର ଲକ୍ଷ୍ୟ ଓ ପ୍ରୟୋଜନ ଅଛି । ଏ କଥାରେ ବୁଝି ବସିଲେ ପ୍ରକୃତିର ମହାତ୍ମ୍ୟ ଓ ସୃଷ୍ଟିର କୌଶଳର ପରିଚୟ ପାଇ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ଓ ବିମୋହିତ ହେବାକୁ ପଡ଼େ ।"

× × × ×

"ପଞ୍ଚମରେ ଓ ଶେଷରେ ପରିଚୟବର୍ଣ୍ଣ । ଏହି ବର୍ଣ୍ଣ ସାହାଯ୍ୟରେ ପ୍ରାଣୀମାନେ ନିଜ ନିଜ ଶ୍ରେଣୀସ୍ଥ ଜୀବମାନଙ୍କୁ ସହଜରେ ଚିହ୍ନିପାରନ୍ତି ଅର୍ଥାତ୍ ସେମାନଙ୍କର ପରିଚୟ ପାଇପାରନ୍ତି । ବର୍ଣ୍ଣର ବିଶେଷ ପ୍ରଗାଢ଼ତା ଏବଂ ନାନାବିଧ ସ୍ପଷ୍ଟ ଦାଗ ଓ ଚିହ୍ନ ଏହାର ବିଶେଷତ୍ୱ । ପ୍ରଧାନତଃ ପକ୍ଷୀମାନଙ୍କ ମଧ୍ୟରେ ଏ ପ୍ରକାର ଉଦାହରଣ ମିଳେ । ଯେତେକ ପକ୍ଷୀମାନଙ୍କର ଦେଖାଯାଏ ଯେ, ପକ୍ଷର ଉପରିଭାଗର ବର୍ଣ୍ଣ ଗୋଟିଏ ଥାଏ,

ମାତ୍ର ପକ୍ଷ ବିସ୍ତାରପୂର୍ବକ ଉଡ଼ିବା ସମୟରେ ତହିଁର ନିମ୍ନସ୍ଥିତ ଅନ୍ୟ ବର୍ଣ୍ଣ ବିଶିଷ୍ଟ କ୍ଷୁଦ୍ର କ୍ଷୁଦ୍ର ପକ୍ଷମାନଙ୍କର ପ୍ରସାରଣଦ୍ୱାରା ସେହି ଅନ୍ୟ ବର୍ଣ୍ଣ ସ୍ପଷ୍ଟ ପ୍ରତୀୟମାନ ହୁଏ । ଏଣୁ ଏହା ଦେଖି ଜାଣିପାରି ପକ୍ଷୀମାନେ ତାହାର ଅନ୍ୱେଷଣ କରୁ କରୁ ପଥ ହୁଡ଼ିଯାଇଥିଲେ ସହଜରେ ସ୍ୱଶ୍ରେଣୀର ଦଳକୁ ଫେରିଆସି ପାରନ୍ତି । ଏପରି ପ୍ରମାଣ ଅନ୍ୟାନ୍ୟ ସ୍ଥଳରେ ମଧ୍ୟ ନ୍ୟାୟାଧିକାର ଦିଆଯାଇପାରିବ ।"

---

# ଉତ୍କଳ ସାହିତ୍ୟରେ ପ୍ରକାଶିତ ଶେଷ ପ୍ରବନ୍ଧ

## ଓଡ଼ିଆ କବିତାରେ ଉପଧା ମିଳନ

ଉତ୍କଳଭାଷାରେ ଲିଖିତ ମିତ୍ରାକ୍ଷର ଛନ୍ଦବିଶିଷ୍ଟ କବିତାମାନଙ୍କରେ ଉପଧା ମିଳନ ଆବଶ୍ୟକ ବା ଅନାବଶ୍ୟକ, ଏ ସମ୍ବନ୍ଧରେ ମତଦ୍ୱୈଧ ଦେଖାଯାଏ । ଆଜିକାଲି କେହି କେହି ଉପଧ ମିଳନରହିତ କବିତାକୁ ଆଦର କରୁ ନ ଥିବାର ଜଣାଯାଏ । ଆଧୁନିକ ଲେଖକମାନଙ୍କ ମଧ୍ୟରେ ଉପଧା ମିଳାଇ କବିତା ରଚନା କରିବା ଏକପ୍ରକାର ପ୍ରଚଳିତପ୍ରଥା ହୋଇଯାଇଅଛି । କିନ୍ତୁ ଉପଧା ମିଳନ ପ୍ରତି ଏକାନ୍ତ ଦୃଷ୍ଟି ରଖି କବିତା ରଚନା କରିବାର ସମୀଚୀନତା ଧରଯାଉ ନାହିଁ । ତଦ୍ୱାରା ସ୍ୱାଧୀନଭାବ ବ୍ୟକ୍ତିର ଅନେକ ଦୂର ପର୍ଯ୍ୟନ୍ତ ଅନ୍ତରାୟ ଘଟେ । ଲେଖକ ପକ୍ଷରେ ଏପରି ଶୃଙ୍ଖଳାବଦ୍ଧ ହେବାର ଆବଶ୍ୟକତା କଣ ଓ କେଉଁ ଛନ୍ଦ ନିୟମର ଅଧୀନ ?

ଉତ୍କଳର ପ୍ରାଚୀନ ଅମର କବିଗଣ ସେମାନଙ୍କ ରଚିତ କବିତାମାନଙ୍କରେ ଉପଧା ମିଳନ ପ୍ରତି କଦାପି ଦୃଷ୍ଟି ଦେଇନାହାନ୍ତି । ତହିଁରେ ଯଦି ସ୍ଥାନେ ସ୍ଥାନେ ଉକ୍ତ ମିଳନ ଦେଖାଯାଏ, ତେବେ ତାହା କେବଳ ଆକସ୍ମିକ । ବୋଧହୁଏ ଏ ପ୍ରସଙ୍ଗରେ ଉଦାହରଣ ଦେଇ ଦେଖାଇବା ଅନାବଶ୍ୟକ ମାତ୍ର । ଏହା ଅବଶ୍ୟ ସମସ୍ତ ପାଠକଗଣ ସ୍ୱୀକାର କରିବେ । ଏହି ପ୍ରାଚୀନ କବିମାନଙ୍କ ରଚନାବଳୀ ଆମ୍ଭ ଦରିଦ୍ର ଉତ୍କଳ ସାହିତ୍ୟର ସର୍ବସ୍ୱ । ସେ ସମସ୍ତ ଛନ୍ଦ ନିୟମାନୁସାରେ ରଚିତ, ସର୍ବଜନାଦୃତ ଓ ଦୋଷଶୂନ୍ୟ ଅଟେ । ଏହା ନିଶ୍ଚୟ ଯେ, କବିତାର ଉତ୍କର୍ଷ ଛନ୍ଦ ବା ଉପଧା ମିଳନ ଉପରେ ନିର୍ଭର କରେ ନାହିଁ, କିନ୍ତୁ ବ୍ୟକ୍ତିଗତ କ୍ଷମତା ଉପରେ । ତେବେ ବର୍ତ୍ତମାନ ଉପଧା ନ ମିଳାଇ କବିତା ଲେଖିଲେ ତାହା କାହିଁକି ଗୋଟିଏ ଦୋଷରୂପେ ପରିଗଣିତ ହେବ ?

ଆଧୁନିକ ଯୁଗରେ ସମ୍ଭବତଃ ଅନୁକରଣ ଯୋଗୁଁ ଏହି ପ୍ରକାର ଗୋଟିଏ ଉପଧା ମିଳନପ୍ରଥା ପଡ଼ି ଯାଉଅଛି । ସ୍ୱର୍ଗୀୟ ରାଧାନାଥ ଓ ଫକୀରମୋହନ କବିମାନେ ଏହି ଉପଧା ମିଳନ ନିୟମ ସମ୍ପୂର୍ଣ୍ଣରୂପେ ରକ୍ଷା କରିଥିବାର ଦେଖାଯାଏ । ଭକ୍ତକବି ମଧୁସୂଦନଙ୍କ କବିତାରେ ଅନେକ ସ୍ଥାନରେ ଉପଧାମିଳନ ଦେଖାଯାଏ ନାହିଁ । ଏହି ଉପଧା ମିଳନ ପ୍ରସଙ୍ଗରେ ଥରେ ଫକୀରମୋହନ କହି ଦେଇଅଛନ୍ତି, "ଉତ୍କଳଭାଷା କବିତାମାନଙ୍କରେ ଉପଧାମିଳନ ଆବଶ୍ୟକ କି ନାହିଁ, ଅବଶ୍ୟ ଏହା ବିଚାର୍ଯ୍ୟ ବିଷୟ ଅଟେ । ମାତ୍ର ଉପଧା ମିଳାଇ କବିତା ରଚନା କରିବା [illegible] କବିତା ରଚନାର ଗୋଟିଏ ପ୍ରଥା ପଡ଼ି ଯାଉଅଛି । ପାଠକମଣ୍ଡଳୀ ମଧ୍ୟ ଉପଧାମିଳନହୀନ କବିତାକୁ ପସନ୍ଦ କରୁ

ନାହାନ୍ତି । ଏପରି କି, ସେପରି କବିତାକୁ ଏକାବେଳକେ ପରିତ୍ୟାଜ୍ୟ ବୋଲି ମଣୁଅଛନ୍ତି । ଏ କ୍ଷେତ୍ରରେ ପ୍ରତ୍ୟେକ କବି ପକ୍ଷରେ ସତର୍କତା ଅବଲମ୍ବନ କରିବା ନିତାନ୍ତ ଉଚିତ ଅଟେ । ଅବଶ୍ୟ ମୋ ମତ ଭୁଲ ହୋଇପାରେ ।" ପାଠକମଣ୍ଡଳୀ ଯଦି ବୁଝିପାରିବେ ଯେ, କବିତାରେ ଉପଧାମିଳନ ଆବଶ୍ୟକ ନାହିଁ, ତେବେ ସେମାନେ କଦାପି ଉପଧା ମିଳନଶୂନ୍ୟ କବିତା ପ୍ରତି ଅନାଦର ପ୍ରକାଶ କରିବେ ନାହିଁ । ଯାହାହେଉ ଏ ସମ୍ବନ୍ଧରେ ଉପଯୁକ୍ତ ବିଚାର ପରେ ଦେଶର ସାହିତ୍ୟିକଗଣ ଓ ସାହିତ୍ୟ ସମାଜଦ୍ୱାରା ଦୃଢ଼ ମତ ପ୍ରକାଶିତ ହେବା ଉଚିତ ମନେକରୁଁ ।

ଶ୍ରୀ ତାରିଣୀଚରଣ ରଥ

---

## LATE SHRI TARINI CHARAN RATH

He was born in the year 1883 at Berhampur in the Ganjam District, which was a part of the Madras presidency prior to formation of the State of Orissa. He was the eldest son of Shri Sreebatsa Rath, who was a teacher in the Madras Educational Service and retired as Sub-Assistant Inspector of Schools. During the early 20th century when non-Oriyas predominated in every sphere of activity, members of this family were the earliest to take to higher english education. With about a dozen Oriya graduates of the Ganjam District during the first decade of the 20th century, the Rath family itself had as many as eight graduates. Shri Tarini Charan Rath graduated from the Presidency College, Madras in the year 1904. At that time even the Inspecting Officers of the Schools in the Ganjam District were non Oriyas who were considered eligible after passing a minor test in Oriya language. A group of young men of Ganjam District decided to take up service in the Education Department, in this context, to protect the Oriya language in the Ganjam District which remained completely cut off from Orissa. Shri Tarini Charan Rath was the pioneer among them and after graduation he joined Government service as Sub-Assistant Inspector of Schools, Berhampur Range. After serving for two years he studied Law at Madras and was the first Oriya Lawyer of the Ganjam District to join the Berhampur bar. After practice at the bar from the year 1908 onwards he was

appointed District Munsif in the Madras Judicial service. He was the first Oriya District Munsif in the Presidency. He served as District Munsif at Aska in the Ganjam District, in the Ongole District and finally at Chodovaram in the Godavari District. While serving at Chodavaram he came home at Berhampur for the summer vacation in the year 1922. While on a brief visit to Aska to meet friends he had a sudden attack of cerebral Malaria and passed away on 22nd June 1922 at the age of about 39 years.

Even though he had a busy career as a legal practitioner and Judicial Officer, he devoted himself to literary work as also historical research. He was regularly contributing articles to the "Utkal Sahitya" from the year 1904 onwards. From a study of the old volumes of this journal, it would appear that he started his literary activities from about the time of his graduation. His writings published in the Utkal Sahitya cover poems, short stories, articles on places of historical interest and articles based on historical research. His last article was published in one of the issues of the Utkal Sahitya during the year 1921-just about one year before death. Besides the articles published in the Utkal Sahitya he has written other publications like history of Ghumsar. history of Oriya literature, 'Rushikulya', 'Madan Manjari', 'Mohini Ba Utkal Bijaya' etc. His bock-let on history of Oriya literature is the first attempt in Orissa on the subject. At the time of his death he was writing Annapurna- a historical novel- This has been got published after his death His article on "ଜୟ ଭଞ୍ଜଦେବଙ୍କ ତାମ୍ର ଶାସନ" was read at the meeting of the Utkal Sahitya Samaj held on 9-3-1922 a few months before his death.

Besides literary work he took very keen interest in historical research and epigraphy He was one of the earliest among Oriyas who made original contribution in this field, which has been published in Bihar and Orissa Research Society journal,-Epigraphic Indica and the Annual Reports on epigraphy of the Archaeological Survey-(Southern India) In the Annual Report on a epigraphy for the year 1918, the Assistant Archaeological Superintendent for epigraphy has

observed as follows. "I started again on 5-10-1907 for Berhampur at the request of Shri Tarini Charan Rath, a very sincere scholar, much interested in epigraphy of the Oriya country. ×× ×× × Shri Rath secured for us five sets of valuable copper plates, four of which belong to the Bhanja line of Oriya Kings and one to Indravarma of Ganga dynasty of 9th century AD. The copper plates collected by him with interpretation, have been published in the Epigraphia Indica as also the reports on epigraphy. Shri R. D. Banerji in his history of Orissa has made references to the copper plates edited by Shri Tarini Charan Rath. In Chapter IX "Harsabardhan and Sailod Bhavas" he has observed as follows. "In regard to King Dharmaraj of the Sailod Bhava dynasty the inscription on another set of plates was brought to public notice for the first time by Late Mr. Tarini Charan Rath, fromerly munsif, Chodavaram in the Madras Presidency. In chapter XXI "The decline of Orissa Pratap Rudra". he has observed as follows:

"An educated Oriya, the late Tarini Charan Rath Munsif of Madras Presidency writing an article on Ramananda Rai in the year 1920, voiced the modern Oriya opinion on this officer of Prataprudra. According to him Ramananda belonged to Karan family and was an oriya by birth". In chapter XX "the empire of Orissa-Purusottam" Shri R.D. Banerjee has quoted the writing of Shri Tarini Charan Rath on the subject in the year 1919 as follows: "it is rather difficult to fix with precision the date of the Kanchi-Kaveri expedition of King Purusottam and find out his contemporary king of Karnatak with whom he made war and whose daughter Padmabati he married".

In the short span of life given to him he made original contribution in the field of literature and historical research. Unfortunately his life was cut short at a time when he was building up his reputation in this filed.

---

Satyabadi Press, Cuttack 1—1976